# ନବକୁଞ୍ଜର ଓ

## ଜଗନ୍ନାଥଙ୍କ ଜଣାଣ ।



ଶ୍ରୀ ଅର୍ଜୁନ ମହାରଣାଙ୍କ ଦ୍ୱାରା ପ୍ରଥମବାର ପ୍ରକାଶିତ ।
୮, ସେଣ୍ଟ ଜେମସ୍ ସ୍କୋୟାର, ବହୁବଜାର ।

ମୂଲ୍ୟ ୬୦ / ମାତ୍ର ।

# ନବଗୁଞ୍ଜର ଓ

## ଜଗନ୍ନାଥଙ୍କ ଜଣାଣ ।

---

ରାଗ — ଘଣ୍ଟାରବ ।

ଅଶ୍ୱ ଗଜ ବ୍ୟାଘ୍ରପାଦ ଯେ, ନର-କର ଚକ୍ରାୟୁଧ ।
ବୃଷଭର ଚୂଳ ଲାଙ୍ଗ ଅଟେ ବ୍ୟାଳ ସିଂହକଟି ଗାବହୁଦ ଯେ ।୧।
ଶିଖିକଣ୍ଠ ଶୁକତୁଣ୍ଡ ଯେ, ଚରଣାୟୁଧ ସୁକୂଟ ।
ଏମନ୍ତ ରୂପରେ ଦେବକୀ ସୁମରେ ମିଳିଲେ ପାର୍ଥ ନିକଟ ଯେ ।୨।
ଦେଖି ବିସ୍ମୟରେ ଅର୍ଜୁନ ଯେ, ଏ ଜୀବ ଜାଣ ନାହାନ୍ତି ବନ ।
ଜଅବାମୋପାଶେକପଟରୂପେସେ ବିଜେକଲେ ଭଗବାନ ଯେ ।୩।
ଏତେ ବିସ୍ମୟ କିରୀଟି ଯେ, ନବଗୁଞ୍ଜ ପାଦେ ଲେଟି ।
ଘଡ଼ିମାତ୍ରାମୂର୍ତ୍ତି ତତକ୍ଷଣେ ଶ୍ରୀପତି ହେଲେ ନିଜରୂପ ଗୋଟି ଯେ ।୪।
ଅର୍ଜୁନଙ୍କୁ କୋଳେ ଧରି ଯେ, କୁଶଳ ପୁଚ୍ଛିଲେ ହରି ।
ବଳଭଦ୍ର କହି ଅଗ୍ନି ମିଳିଛନ୍ତି ବୃଦ୍ଧ ବିପ୍ରରୂପ ଧରି ଯେ ।୫।

ରସକୋଇଲି — ବୃତ୍ତେ ।

ଚକାନୟନକୁ ପଟ୍ଟିଛ କହି । ଡକାଇ ଖରନିଃଶ୍ୱାସ ପକାଇ ଢଙ୍କା ପକାଇ ସ୍ତୁତି ପଛରେ । ଦକାରି ! ମୋ ଆର୍ତ୍ତ ଶୁଣ ସତ୍ୱରେ ହେ । ଢଙ୍କା ବାଜୁଛି ମହିମା ହେ । ଠକାର ଜଣ କର୍ଣ୍ଣେ ଟିର ନ ଶୁଣ କାହିଁ କି ବିଶ୍ୱକର୍ମା ହେ ।୧।

କରୀ ହରିଣୀ ଦ୍ରୌପଦୀ ବିପତ୍ତି । ହରି ! ହରିଛ ପଶ୍ଚ ଭେରି ଶୁଣି । ଦରିଦ୍ର ସୁଦାମାକୁ କୋଟିନିଧି । ପରିପୂର୍ଣ୍ଣେ ଦେଲ କୃପାବାରିଧି ହେ । ଧରି ଯା ମହିମା ଗଲେ ହେ । ସରିଛ ଯାଉଛ ହରି ! ଥରେ ଆଉ ନ ସ୍ମରିଁ ଲି କୃପାନେବେ ହେ ।୨

ଆଜାନୁବାହୁ ! ମୁଁ ପଢିଛି ଜଣେ । ଅଜାମିଳୁଁ ବଳି ସହସ୍ର ଗୁଣେ । ଲଜ୍ଜା ହର ! ନ ଛାଡିଲେ ନକର । ଧ୍ୱଜା ଚକ୍ରରୁ ବନ୍ଧନ ଉଦ୍ଧାର ହେ । ମଜ୍ଜାରେ ମୁଁ ଏହା ଭାବେ ହେ । ବଜାଇ ଜୟ ଆର୍ତ୍ତତ୍ରାଣ ଡିଣ୍ଡିମ, ହଜାଇ ଦେଉଛ ଏବେ ହେ ॥

ମାତା ପିତା ସେବା ମୋର ବିଭଙ୍ଗ । ନିତ୍ୟପ୍ରତି କରେ ଅସତ ସଙ୍ଗ । ସିତାରେ ଅବଗାହି ନାହିଁ ଦିନେ । ଗୀତା ଭାଗବତ ନ ଶୁଣେ କର୍ଣ୍ଣେ ହେ । ପୀତାମ୍ବର ! ଶତ୍ରେ ଛନ୍ତିହେ । ଜତାପ ଚିହ୍ନସ୍ୱପରୁଁ ଶଙ୍ଖଇବ, ମୋ ଅନ୍ତକାଳେ ଯେମନ୍ତିହେ ।୪

ବଟପୁଟବାସୀ ! ଆରତ ତ୍ରାଣ । ଘଟ ଘଟକେ ରହି ସର୍ବ ଜାଣ । ଖଟନ୍ତି ଯେଉଁ ଚରଣେ କମଳା । ହଟକର ମୋ ଦୁର୍ଦ୍ଦଶା ନ ଗଲା ହେ । ନଟବର ବେଶଧାରୀ ହେ । ଝଟିତରେ ପ୍ରଭୁ ଶୁଣ ତେଜ଼ର ଶୁଣ ଏ ଦୀନଜନ ଗୁହାରୀ ହେ । ୫ ।

ପାଣ୍ଡବପ୍ରିୟ ଦଣ୍ଡୁଛ ନ ଦୋଷେ । ଦାଣ୍ଡକୁ ଏ କଥା କେମନ୍ତ ଦିଶେ । ଗୃଣ୍ଡରେ ମଇତ୍ର ଛଲେ ଆପଣ । କାଣ୍ଡକରେ ନେଲ ବାଳିର ପ୍ରାଣ ହେ । ତାଣ୍ଡବନୃତ୍ୟକାରୀଙ୍କି ହେ । ଭାଣ୍ଡ କରିଦେଲ ବଷ୍ଟୁକୂଟ ମାୟା ଲଗାଇଦେଇ ଭେଳିକ ହେ ।୬।

ଧଣ୍ଡାମାଳ ବୁହା ଦୁର୍ଦ୍ଦଶା ହନ୍ତୁ । ଗୃଣ୍ଡାଲ ଗ୍ରାସୁଅଛୁ ଗୃହୁଁ ଗୃହୁଁ । ଭଣ୍ଡାରେ ଖଣ୍ଡା ନାହିଁ କ ମହିମା ! ଗଣ୍ଡାକର ଦିଶୁନାହିଁ ମହିମା ହେ । ହଣ୍ଡା ମୋ ଯାଉଛୁ ଫାଟି ହେ ଅଣ୍ଡାକର କୃପାଜଳ ବୃଷ୍ଟିକର, ମୋ ଚିତ୍ତ ଗୃହକ ପାଟି ହେ ।୭

ଭଣ୍ଡି ଖାଇବାକୁ ଶ୍ରୀନୀଳାଚଳେ । ଗଣ୍ଡି ଫୁଲାଇଛ ବଡ଼ଦେଉଳେ । ଫାଣ୍ଡିରେ ଇଙ୍ଗାର କରିବ ଯାଇଁ । କାଣ୍ଡିଦେବେ ଭକ୍ତମାନେଟି ରହି । ଆହେ ଭାଣ୍ଡିର ମୂଳିଆ ହେ । ଦଣ୍ଡିଲେ ଜସ୍ମମୁଁ କାଆଗେ କହିବ, ଆହେ ପୀତ ଦୁକୁଳିଆ ହେ ।୮।

ମନ୍ଦରଧର ! ନୀଳଗିରିବାସେ । କନ୍ଦରବାସୀ ପ୍ରାୟେ ଅଛ ବସି । ପନ୍ଦରନେତ୍ର, ଧାତା ପୁରନ୍ଦର । ବନ୍ଦନା କରନ୍ତି ଯେଉଁ ପଦ୍ମର ହେ । ଛନ୍ଦ ଛାଡ଼ ଦେବସ୍ତ୍ରୀଙ୍କେ ହେ । ନନ୍ଦନନ୍ଦନ ଶ୍ରୀଚରଣାରବିନ୍ଦେ, ଚନ୍ଦନ ହଜୁର ଭଜେ ହେ ।୯ ।

## ସର୍ପ ବର୍ଣ୍ଣନା ।

### ରାଗ—କାମୋଦୀ ।

ବାନ୍ଧିଲ ଜାଣି କ୍ଷମା, କର ନୋହିଲ ରମା, ରମଣ ଦଣ୍ଡେ ଛୁଅ ଟାଳି । ତୁମ୍ଭଙ୍କୁ ଜଗନ୍ନାଥ ! ଆଜ ମୋ ମନୋରଥ, ପୂର୍ଣ୍ଣ କରବ ଦେଇ ଗାଳି ହେ । ମହାପ୍ରଭୁ । କରୁଣାବନ୍ଧି ବୋଲି କର । କହନ୍ତି ବୁଧେ ଡରି ମରି । କାଳସର୍ପ ଆପଣ କବଳ କର ପ୍ରାଣ·ପବନମାନଙ୍କୁ ସବୁରି ହେ । ମହାପ୍ରଭୁ ।୧।

ଜଳଧି ଅନ୍ତେ ନିଜ-ଘର ଦେବାଧିରାଜ, ବୁଡ଼ାଇ ଦେଇଛ ଆପଣ । ତୁମ୍ଭର ସିନା ଯେନ ଆଶ୍ଚର୍ଯ୍ୟ ନୁହେ ଆନ, ଲୋକର ଘରବୁଡ଼ାପଣ ହେ । ମହାପ୍ରଭୁ ! ଭୁଜଙ୍ଗ ସାମ୍ୟ ଆମ୍ଭ ତୁଲେ, ବଢାଅ ବୋଲି ଆଜ୍ଞା ଦେଲେ । ମୁଁ ନୁହେ ଘରବୁଡ଼ା, ବଢାଇ-ବାକୁ ଛଡ଼ା, ହୋଇଛ ବଢାଇବି ଭଲେ ହେ । ମହାପ୍ରଭୁ ।୨।

ତାହାକୁ ବୋଲି ଚକ୍ଷୀ, ଚକ୍ଷୁ ଥିବାରୁ ଚକ୍ଷୀ ତୁମ୍ଭେତ ବୋଲାଅ ମନ୍ତ୍ରେ । ବୋଲାଇ କୁଣ୍ଡଳୀ ଯେ ଆପଣତ ବିଶେଷେ ଭୂଷିତ ମକର କୁଣ୍ଡଳେ ହେ । ମହାପ୍ରଭୁ । ଅଦୃଶ୍ୟ ହେବାରୁ ତା ପଦ । ତାହାକୁ ବୋଲି ଗୂଢ଼ପଦ । ତୁମ୍ଭର ଚରଣତ, ବିରଞ୍ଚିଙ୍କି ଗୁପତ କାହିଁ ତାଠାରୁ ତୁମ୍ଭ ଭେଦ ହେ । ମହାପ୍ରଭୁ । ୩ ।

କାନ ନ ଥାଇ ଆକ୍ଷି, ଭୁଜଙ୍ଗଠାରେ ଦେଖି, ନୟନଶ୍ରବା ବୋଲି ତାକୁ । କହ କମଳାନନ ! କାହିଁ ଛ ତୁମ୍ଭ କାନ । ସର୍ପ ବୋଇଲେ ଚଳିବାକୁ ହେ । ମହାପ୍ରଭୁ । ଫଣୀ କାହାକୁ ବୋଲି

ଭୋଗ । ଥିବାରୁ ସେ ଦୁଇ ସଂଯୋଗ । ତାହାକୁ ବୋଲି ଭୋଗୀ, ନୁହନ୍ତି ତୁମ୍ଭେ ଭୋଗୀ, କରୁ ଯେ ଅଛ ମହାଭୋଗ ହେ । ମହାପ୍ରଭୁ । ୪ ।

ଅହିତ ବୋଲଇ ସେ, ଏକଅକ୍ଷର କୋଷେ ଅ,ହିତ ବୋଲନ୍ତି ବିବୁଧେ । କଂସ ପ୍ରମୁଖାସୁର, ବିପକ୍ଷମାନଙ୍କର ଅହିତ ହୋଇଛ ଆପଣ ହେ । ମହାପ୍ରଭୁ ।ଅସାବଧାନେ ଗଲେଗିଳି ଗୋଟିକୁ ଗିଳଇ କୁଣ୍ଡଳୀ । ଚତୁର୍ଦ୍ଦଶ ବ୍ରହ୍ମାଣ୍ଡ ହାଣ୍ଡି ମଣ୍ଡଳୀ ଚୂର୍ଣ୍ଣ କରି ଆପଣେ ଅଛ ଗିଳି ହେ । ମହାପ୍ରଭୁ । ୫ ।

ହେବ ବା ଅବଧାନେ, ତାହାକୁ ତ୍ରିଭୁବନେ, ବୋଲନ୍ତି କାକୋଦର ନରେ । ଯେତେକ ପିଷ୍ଟପଯାକ, ମଧ୍ୟେ ଗୋଟିଏ କାକ ନାହିଁ କି ତୁମ୍ଭର ଉଦରେ ହେ । ମହାପ୍ରଭୁ । କହିବା କଥା ମୋର ଦେଖି । ଅଛନ୍ତି ଲକ୍ଷ୍ୟ ସାକ୍ଷି । ବ୍ରଜେ ଭୁଜଙ୍ଗ ଗୃଲି, ମୁଁ କରିନାହିଁ ବୋଲି, ତୁଁ ଅଛ ନିଜ ଚକାଆକ୍ଷି ହେ । ମହାପ୍ରଭୁ ।୬

ତୁମ୍ଭେ ତ ସର୍ପ ନୁହ, କାଳୀୟଠାରେ ଦ୍ରୋହ କଲ କାହିଁ କି ଏତେ କରି । କେତେ ନ ଥିଲେ ଗୋପେ, ଅଘାକୁ ତୁମ୍ଭେ କୋପେ, କି ହେତୁ ଦେଲ ପ୍ରାଣେ ମାରି ହେ । ମହାପ୍ରଭୁ । ତାହା ନାମ ତୁମ୍ଭର ନାମ । ଅଦ୍ୟାପି ହେଉଅଛ ସମ । ଯେବେ ସ୍ୱଗୋତ୍ର ଦ୍ରୋହ ନ ଥାନ୍ତା ନାଥ ! କହ । କାହିଁ କି ହୁଅନ୍ତା ଏ କର୍ମ ହେ । ମହାପ୍ରଭୁ । ୭ ।

ବ୍ରହ୍ମା ଶଙ୍କର ମୁଖ୍ୟ, ଦେବଙ୍କଠାରୁ ମୋକ୍ଷ, ପ୍ରଧାନ ଧନ ଗୃହା କଲ । ପଛଭଙ୍କ ନ ପୋଷି-ବାରୁ କ୍ରମରେ ଆସି, ବିଷ ପରରେ ଆଭାସିଲ ହେ । ମହାପ୍ରଭୁ । ବିକରେ ସେ ବଡ ଲମ୍ପଟ ବିବର ବହିରଙ୍ଗମନ୍ତ୍ରଟ । ତହିଁ ଯେତେ ଲମ୍ପଟ, ଆପଣେ ଶ୍ରେଷ୍ଠପଟ,-ପଟଲେ ହୋଇଅଛ ସ୍ଫୁଟ ହେ । ମହାପ୍ରଭୁ । ୮ ।

ଜାଣି ବାଳକକାଳୁ, ଲବଣୀ ହାଣ୍ଡିଠାରୁ ଧରି ପାଶରେ

ଦୁହେ ଭିଡ଼ । କଥା ନ ରଖି ଥିଲେ, ଯାମଳା ଭରୁଥିଲେ, ଜନନୀ ନେଇ ଦେଲେ ସୁତ ହେ । ମହାପ୍ରଭୁ । ଯେତେକ ସ୍ୱଳ୍ପ ଗର୍ଭେ ପଡ଼ି । ଜୀର୍ଣ୍ଣ ହେବାକୁ ହେଲ ଭିଡ଼ି । ଜଗତେ କେତେ ଲୋକେ, ଜାଣି ନ ଥିବେ ଥୋକେ, ସେ ଭରୁ ଯିବାର ଉପୁଡ଼ ହେ । ମହାପ୍ରଭୁ । ୯ ।

କେଉଁ ଶିଶୁ କାମିନୀ-ସ୍ତନ ପାନରେ ଘେନ, ଯାଉଛି ଜୀବନ ଜଗତେ । ବଂଶି ପୂତନା ସ୍ତନ, ଦେଇବାରଥିଜୀବନ, ନାହିଁ ତ ତୁମ୍ଭ ବଳ୍ୟରେ ହେ । ମହାପ୍ରଭୁ । ଜଗତେ ଧରୁ ଯେତେ ଅହୀ । ଘଟ ଗୋଟିକେ ରଖି ନେଇ । ଅଛ ଯାବତ ଘଟେ, କଣ୍ଠାଅ ଯେ କପଟେ, ମୋହ ଆଗରୁ ଯିବ କାହିଁ ହେ । ମହାପ୍ରଭୁ । ୧୦ ।

ନୋହେ ଆବାସ ଦ୍ୱାର, ମାନସ ସରୋବର, ଶୁଭିଲ ନାଗେଶ୍ୱର ରବ । ଦଣ୍ଡେ ନ ରହି ଧାଇଁ, ଗଲେ ହେ କାହିଁ ପାଇଁ, ଆଉ ନ ଥିଲେ କେତେ ଦେବ ହେ । ମହାପ୍ରଭୁ । ମନ୍ତ୍ର ଜାଣିମା ଲୋକେ ବଶ । ସ୍ତୁଅନ୍ତି ସବୁ ଆଶୀବିଷ । ମନ୍ତ୍ରା-ଧୀନତ ତୁମ୍ଭେ, ବନ୍ଧାଉ ଅଛ ଦମ୍ଭେ; ଭୁଜଙ୍ଗ ନୁହ ଆଉ ବସ ହେ । ମହାପ୍ରଭୁ । ୧୧ ।

କହଇ କବିସୂର୍ଯ୍ୟ, ନାଥ ! ନୁହ ଅଧୈର୍ଯ୍ୟ, ଏଣିକ ମହତ୍ତ୍ୱ ନ ଯାଉ । ମୁଁ ତୁମ୍ଭ ପରିସ୍ଥିର, ଜାଣିଲେ ତ ବସ୍ତୁର, ଇତରେ ନ ହସନ୍ତୁ ଆଉ ହେ । ମହାପ୍ରଭୁ । ମୋତେ ମାୟକ ଏତେ ହେବ । ଯେତେବେଳେ ମୋ ଅନ୍ତ ହେବ । ପରେଶଙ୍କ ଦ୍ୱାର, ସୀମାରୁ ପରିହର, କରଇ ଯହିଁ ତହିଁ ନେବ ହେ ମହାପ୍ରଭୁ ॥

ରାଗ—ପଞ୍ଚମବସନ୍ତ ।

ଓଁକାରଶୀଳ ! ଭୋଜଗଜ-ଜୀବନ ହରଣେ ତେଜଃ । ଅର୍ପଣ

କଲ ଭୂଷଣ କୋହି । ଗଭୀରଜଳେ କୁମ୍ଭୀର-ଗଳଗ୍ରହଣେ କୁମ୍ଭୀର । ଗଜ ରକ୍ଷା କଲ କକ୍ଷାବହି ହେ । ନୀଳାଚଳ-କଳାକର ! ସତ କି ଏ ମିଛ । ନେଲ ଯାହା ଦେଲ ତାହା, ଏଥକୁ କିପାଁଇ ମହା ଦାତାପଣେ ପତାକା ବାନ୍ଧିଛ ହେ । ୧ ।

ବଳି ବଳିଷ୍ଠ ବଳିକି, ଅକଳିତ ବିଭୂତିକି, କଳିତ କରରେ କରିଥିଲ । ନ ମାନି କରି ରମାଙ୍କୁ, ଅକିଞ୍ଚନ ସୁଦାମାଙ୍କୁ, ବିପୁଳ ସମ୍ପଦେ ମଣ୍ଡିଦେଲ ହେ । ନୀଳାଚଳ-କଳାକର ! ସତ କି ଏ ମିଛ । ନେଲ ଯାହା ଦେଲ ତାହା ଏଥକୁ କିପାଁଇ ମହା ଦାତାପଣେ ପତାକା ବାନ୍ଧିଛ ହେ । ୨ ।

ଗୋକୁଳ କଲ ଧଉତ, ଗଉଡୁଣୀଙ୍କ ମହତ୍ତ୍ୱ, ନେଇଥିବା ସକାଶରୁ କଲ । ଦ୍ରୁପଦ ନୃପ ନନ୍ଦନା ମହତ୍ତ୍ୱ ହର ବେଦନା । ବିନାଶନେ ହେଲ ଧନ୍ୱନ୍ତରୀ ହେ । ନୀଳାଚଳ-କଳାକର ! ସତ କି ଏ ମିଛ । ନେଲ ଯାହା ଦେଲ ତାହା, ଏଥକୁ କିପାଁଇ ମହା-ଦାତାପଣେ ପତାକା ବାନ୍ଧିଛ ହେ । ୩ ।

ପାତକୀ ମୁକୁଟଶ୍ରେଣୀ, ଶିରୋମଣି ଯଦୁମଣି, ମନ ଥିଲେ ନେଇ ନ ପାରିଛ । ଏହା ଉଦ୍ଧାରଣେ ଯେବେ ଶର ଦେଇପାରିଲବେ, ତେବେ ସିନା ଦାତା ବୋଲାଇଛ ହେ । ନୀଳାଚଳ, କଳାକର ! ସତ କି ଏ ମିଛ । ନେଲ ଯାହା ଦେଲ ତାହା ଏଥକୁ କିପାଁଇ ମହା-ଦାତାପଣେ ପତାକା ବାନ୍ଧିଛ ହେ । ୪ ।

### ରାଗ—ତୋଡ଼ି ପରଜ ।

ଶ୍ରୀରମଣ ସିନ୍ଧୁ-ଜେମା ପ୍ରାଣବନ୍ଧୁ, ତୁମ୍ଭେତ ଜଗତ ପତି । ହେଲେକି ସମଦୃଷ୍ଟି, ତାକାଙ୍କୁ ପୁଣି, ଏ କି ପକ୍ଷପାତ ରୀତି । ମହାପ୍ରଭୁ । କେ କି କଲା ମୁଁ ନ କଲି । କେ କି ଦେଲ ଅବା, ମୁଁ ଏକା ନ ଦେବା, ଘେନି ଏତେ ପର ହେଲ । ମହାପ୍ରଭୁ ।୧।

ମୃଗଯୁବତୀଙ୍କ ରଖିଲ ଯେ ନାଶି, ମୃଗୟା ବିଦ୍ବେଷ ଦାଉ ।
ଚରଣ ପଙ୍କଜ, ସ୍ମରଣ ବିନା ସେ, କିସ କରିଥିଲ ଆଉ ।
ମହାପ୍ରଭୁ । କୁମ୍ଭୀର ଗ୍ରାସନ୍ତେ ଗାତ୍ର । ଜନେ କହିବାରେ
ଅନେକ ପ୍ରକାରେ, ମନେ କଲି ସିନା ମାତ୍ର । ମହାପ୍ରଭୁ । ୨ ।

କୁରୁସଭା ମଧ୍ୟେ, ଅଧୀର ହୁଅନ୍ତେ, ଦ୍ରୁପଦସୁତା ଆବର ।
ଧାଇଁନାରୁଛ ଆନ, କିସ କରିବାର. କାନେ ଶୁଣିନାହିଁ ମୋର ।
ମହାପ୍ରଭୁ । ହିତେ ଯେ ଥାଅ ନିରତେ, କାଞ୍ଚନ କେତେ କି
ଲକ୍ଷ ଦେଇଥିଲେ ପଣ୍ଡୁ ରାଜା ପାଞ୍ଚସୁତେ । ମହାପ୍ରଭୁ । ୩ ।

ରୂପରେ କେଳଣ, ଉପରେ ପତାକା, ହୁଆଇଲ ଯେ କୁଜୀଙ୍କ
ଯାହା ହୋଇଥିଲ, ଯାହା ହେଲି ତୁମ୍ଭ, ପ୍ରସାଦବଶୁଁ ରଙ୍ଗଣୀ ।
ମହୀପ୍ରଭୁ । ଜଗତରେ ଏହା ଜଣା । ଅନ୍ଧକୁ ନେତ୍ର
ମିଳିବାରୁ ହୋଇଛ, ଯଶଃ ଡିଣ୍ଡିମ ବାଜଣା । ମହାପ୍ରଭୁ । ୪ ।

ନଳ କୁବେରଙ୍କ ଚରିତକୁ ବୁଝେ, ବଳକୁ ଅଛନ୍ତି ଏବେ ।
ପ୍ରହ୍ଲାଦଙ୍କୁ ମହା, ଆହ୍ଲାଦ ଦେଇଛ, ଆପଣ ପଣ ପୂରୁବେ ।
ମହାପ୍ରଭୁ । ମୁନିଙ୍କ ଆଶ୍ରମ ଶିଳା । ତୁମ୍ଭଙ୍କୁ କି ଉପକାର,
କରି ରୂପବତୀ ହୋଇ ବିହରିଲା । ମହାପ୍ରଭୁ । ୫ ।

ଅନ୍ୟାନ୍ୟମାନଙ୍କ. ମନ ଚୋର ନୁହେ, ଆଜ୍ଞାହେବ ଅବା
ମୋତେ । ନାମ ସ୍ବସୁତର ଧରିବାରୁ ଦିବ୍ୟ-ଧାମ ଲଭିଲା
କେମନ୍ତେ । ମହାପ୍ରଭୁ । ଅଜାମିଳ ମହୀସୁର । କେଉଁ ସାବ-
ଧାନ, ହୋଇ ନାମ ଧ୍ୟାନ କରିଥିଲା ସେ ତୁମ୍ଭର । ମହାପ୍ରଭୁ ।୬

କେବଳ ସୁଦାମା ଦ୍ବିଜ ନିଜ ଶକ୍ତି, ଅନୁରୂପେ ଆଚରିଲେ ।
ଗଳିତା ଏ ଖୁଦ, ନଜର ଦେବାରୁ, ଫଳ ତାଦୃଶ ଲଭିଲେ ।
ମହାପ୍ରଭୁ । ଆଉ କେ କି ଦେଲେ କହ । କାହା କାମ ତୁମ୍ଭ,
ପୂର୍ଣ୍ଣ କରି ନାହଁ, ଅହେତୁକ ଅନୁଗ୍ରହ । ମହାପ୍ରଭୁ । ୭ ।

ଭବି ଭବ ସ୍ୱୟଙ୍କୁ ଯୋଡ଼ି କରଯୁଗଳ ଶ୍ରୀମୁଖରେ କହେ ।
ଭଲ ଅଛା ମନ, କରିବା କଥାଉ, କାହାରି ଆୟତ୍ତ ନୁହେଁ ।
ମହାପ୍ରଭୁ । ସବୁ ତୁମ୍ଭ ଇଚ୍ଛା ସିନା । ରଖ ବା ନ ରଖ, ଏକା
ମୋ ଗତିତ, ପତିତପାବନ ବାନା । ମହାପ୍ରଭୁ । ୮ ।



ସତ୍ୟବାଦୀ ଗୋବନ ରାଧାମୋହନ ହେ । ଦୁଃଖ ଦୂରିତ କର
ବାରେ ଦହନ ହେ । ଘୋଷା । ଦ୍ୱାପରଯୁଗରେ ନନ୍ଦଗଉଡ଼
ଘରେ । ଗାଈ ଚରାଇଲ ବୃନ୍ଦାବନ ଭିତରେ । ଗୋପାଳପୁଅ
ସଙ୍ଗେ, ଖେଳିଲ ନାନାରଙ୍ଗେ, ବନରେ ବନଭୋଜି, କଲ
କେତେ ସରାଗେ । ଆହେ ହରି, ବହ୍ନିଦର୍ପକୁ କଲ ଭଞ୍ଜନ । ୧ ।

ଆଉ ଦିନେ କାଳିନ୍ଦୀରେ କମଳ ତୋଳି । କାଳୀଛିରେ
ଚଢ଼ି କାଳୀ ଦର୍ପକୁ ଦଳି । କାଳୀୟ ବିଷଜ୍ୱାଳା ଲୋକେ
ସୁହା ନ ଗଲା, କମଳ ଶ୍ରୀଚରଣେ, ମୁହଁ କାଳୀ ଦଂଶିଲା ।
ଆହେ ହରି, ତୁମ୍ଭପାଦେ ପଶିଲା ଶରଣ । ୨ ।

ଅପ୍ରକଟେ ବୃନ୍ଦାବନେ ଥିଲଟି ରହି । ବିପ୍ରସତ୍ୟ ମାନ ସାକ୍ଷୀ
ହେଲ ଗୋସାଇଁ । ଶ୍ରୀରଙ୍ଗାପାଦେ ପଥ, ଗଲ ହେ ଗୋପୀନାଥ,
କଳିଯୁଗରେ ହରି, କଲ ଏହା ଚରିତ, ଅଳ୍ପସାବାସୀ ହୋଇ,
ଓଡ଼ିଶାରେ ରହିଛ । ଆହେ ହରି, ରାଧାଜୀବନ ବଂଶୀବଦନ । ୩

ବନ୍ଦାଉଛ ସତ୍ୟବାଦୀ ଛନ୍ଦାପଦରେ । ବନ୍ଦାହେବ ତୁମ୍ଭ
ନାମ ଭାବରଙ୍ଗରେ । ଦୀନକୃଷ୍ଣ କହଇ, ଲବଣୀ ପାଦଦୁଇ,
ହୃଦେ ସମ୍ଭାଳି ଥିବ, ନେତ୍ରେ ତହିଁ ଦେଇ, ପ୍ରାନ୍ତକାଳରୁ
ମୋତେ, ସଙ୍ଗାଳି ହେବ ଯେହି । ଆହେ ହରି, ଦୟାକୁ ମଣି
ଦୁଃଖନାଶନ । ୪ ।

ସମାପ୍ତ ।



